# ଅନ୍ନପୂର୍ଣ୍ଣା



ରଚୟିତା

## ଶ୍ରୀ ଗୋକୁଳ ଚନ୍ଦ୍ର ମିଶ୍ର

# ଅନ୍ନପୂର୍ଣ୍ଣାରାଣୀ



୰ ଶାନ୍ତିମୟୀ ମିଶ୍ର

ଆବିର୍ଭାବ - ତା. ୧୬।୦୩।୧୯୪୯ ମସିହା

ତିରୋଧାନ - ତା. ୧୦।୦୩।୨୦୦୭ ମସିହା

ରଚୟିତା - ଶ୍ରୀ ଗୋକୁଳ ଚନ୍ଦ୍ର ମିଶ୍ର

# ଭୂମିକା

ଶାନ୍ତିମୟୀ; ପରମାତ୍ମାଙ୍କ ଇଚ୍ଛାରେ ତୁମେ ଜନ୍ମ ନେଲ। ମୋତେ ବରଣ କରି ସଂସାର କଲ । ଉତ୍‌ଥାନ ପତନ ; ସୁଖ ଦୁଃଖ ସ୍ରୋତର ସମସ୍ତ ଭାର ବହନ କରି ମୋତେ ସାହିତ୍ୟ ସାଧନାରେ ବ୍ରତୀ ହେବାପାଇଁ ପ୍ରେରଣା ଦେଲ । ଦୁର୍ଗା-ମାଧବ କୃପାରୁ ତୁମ ସାନିଧ୍ୟ ଲାଭ କରି ସାହିତ୍ୟ ସାଧନା ଅବ୍ୟାହତ ରଖିଅଛି । ଜନନୀ ସେବାର ଉପଲବ୍ଧ ସମସ୍ତ ଫଳ ତୁମ ଯୋଗୁଁ ସମ୍ଭବ ହୋଇଅଛି । ପ୍ରାପ୍ତ ଫଳଶ୍ରୁତି ମାଧବଙ୍କୁ ସମର୍ପଣ କରି ଆତ୍ମ ସନ୍ତୋଷ ଲାଭ କରୁଅଛି ।

ମଙ୍ଗଳମୟଙ୍କ ଇଚ୍ଛାରେ ତୁମ ତିରୋଧାନ ମାର୍ଚ୍ଚ ୧୦ ତାରିଖ ଦୁଇ ହଜାର ସାତ ରାତ୍ରୀରେ ହୋଇ ଯାଇଅଛି । ବିଗତ ଏପ୍ରିଲ ବାଇଶି ତାରିଖ ଦିନ ରାଉରକେଲା ଇସ୍ପାତ ନଗରୀସ୍ଥିତ ମଧୁ ମଣ୍ଡପରେ; ଉତ୍କଳ ଗୀତି କବି ସମାଜ ରାଉରକେଲା ତା'ର ବାର୍ଷିକ ଉତ୍ସବ ଅବସରରେ ମୋତେ ''ଶ୍ରୀ ଜୟଦେବ ସମ୍ମାନ'' ରେ ସମ୍ମାନିତ କରିଅଛନ୍ତି । ସ୍ୱର୍ଗରେ ଥାଇ ତୁମେ ପ୍ରୀତ ହୋଇଥିବ । ତୁମ ସ୍ମୃତିକୁ ଉଜ୍ଜୀବିତ କରାଇବା ପାଇଁ ତୁମ ସଂକ୍ଷିପ୍ତ ଜୀବନୀକୁ ଆଧାରକରି ''ଅହ୍ୟରାଣୀ'' ଗୀତି କବିତା ରଚନା କରି ପ୍ରକାଶିତ କରିଛି । କଥିତ ପୁସ୍ତକ ତୁମ କର କମଳରେ ଅର୍ପଣ କରୁଅଛି। ଆଶା ଉପହାର ଗ୍ରହଣ କରି ପରମ ଶାନ୍ତି ପ୍ରାପ୍ତ ହେବ ।

ସର୍ବଶ୍ରୀ କବି ସଙ୍ଗୀତ ବିଶାରଦ ଅଚ୍ୟୁତାନନ୍ଦ ମେହେର; ନାଟ୍ୟ ସଙ୍ଗୀତ ନିର୍ଦ୍ଦେଶକ ସତ୍ୟନାରାୟଣ ପାତ୍ର; କବି,ରସିକ, ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ ତାରିଣୀ ଚରଣ ସାହୁ, ଭକ୍ତକବି ସୁଦର୍ଶନ ଘଡ଼େଇ ''ଅହ୍ୟରାଣୀ''ପାଣ୍ଡୁଲିପି ପାଠ କରି ରଚୟିତାକୁ ବାଧିତ କରିଅଛନ୍ତି । ପରିଶେଷରେ ପାଠକ ବୃନ୍ଦ ଏହାର ରସ ଆସ୍ୱାଦନ କଲେ ଶ୍ରମ ସାର୍ଥକ ହେବ ।

ରଚୟିତା

ଶ୍ରୀ ଗୋକୁଳ ଚନ୍ଦ୍ର ମିଶ୍ର

ଏଲ୍. ସି. ଆର.-୪୭, ଛେଣ୍ଡ

# ଅର୍ଘ୍ୟରାଶୀ


ରଚୟିତା : Poet :

ଶ୍ରୀ ଗୋକୁଳ ଚନ୍ଦ୍ର ମିଶ୍ର Sri Gokul Chandra Mishra





ପ୍ରକାଶକ : Publisher :

ଶ୍ରୀ ଗୋକୁଳ ଚନ୍ଦ୍ର ମିଶ୍ର Sri Gokul Chandra Mishra

ଘର-ଏଲ.ସି.ଆର.-୪୭, House-LCR-47, Chhend Colony

ଛେଣ୍ଡ କଲୋନୀ, ଫେଜ୍-୧ Phase-1, P.O. : Rourkela-15

ପୋ.ଅ. : ରାଉରକେଲା-୧୫, District : Sundergarh, Orissa

ଜିଲ୍ଲା-ସୁନ୍ଦରଗଡ଼, ଓଡ଼ିଶା PIN - 769 015

ପ୍ରକାଶକାଳ : Publish Time :

ପହିଲି ରଜ Prathama Raja

ପ୍ରଥମ ସସ୍କରଣ : First Edition :

ତିନି ଶହ Three Hundred

ମୁଦ୍ରଣ : Printer :

ମା'ଜାଗୁଲାଇ ପ୍ରିଣ୍ଟିଂ ପ୍ରେସ୍ Maa Jagulai Printing Press,

ସେକ୍ଟର-୧୮, ରାଉରକେଲା-୩ Sector - 18, Rourkela-3

ଦୂରଭାଷ-୯୯୩୭୬୨୯୮୩୬ Mob.: 9937629836

ବିନାମୂଲ୍ୟେ ବିତରଣ For free distribution

# ସୂଚୀପତ୍ର

# ଅହଲ୍ୟରାଣୀ

## ପ୍ରଥମ ତରଙ୍ଗ

### (ରାଗ - ଆଶାବରୀ)

ମଧୁକାଳେ ମଧୁମୟ ଧରିତ୍ରୀ ଆକାଶ ।
ମଧୁରେ ତପନ ଶଶୀ ହୁଅନ୍ତି ପ୍ରକାଶ ।୧।
ଝର ନଦୀ ବନସ୍ପତି ମଧୁରେ ମଧୁର ।
ଦିବସ ରଜନୀ ଶୋଭା ଦିଶେ ମନୋହର ।୨।
ମଧୁରେ ମୃଦୁ ମଳୟ କରଇ ବିହାର।
ସକଳ ସୁଖ ପ୍ରଦାନୀ ତୋଷଇ ଅନ୍ତର ।୩।
ଉଣେଇଶ ଅଣଚାଶ ଚଇତ ମାସରେ ।
କୃଷ୍ଣ ଦ୍ୱିତୀୟାର ହସ୍ତା କନ୍ୟା ଲଗନରେ ।୪।
ପୁଣ୍ୟ ଜେମାଦେଈପୁର ଶାସନ ଗ୍ରାମରେ ।
ଦୁଲଣୀ ଗୋପୀନାଥଙ୍କ ଦ୍ୱିତୀୟ ଗର୍ଭରେ ।୫।
ମାତା ପିତା କୋଳ ମଣ୍ଡି ପଣ୍ଡିତ ବାସରେ ।
ଶାନ୍ତିମୟୀ ଜନ୍ମ ନେଲ ବିଧି ବିଧାନରେ ।୬।



## ଦ୍ୱିତୀୟ ତରଙ୍ଗ

### (ରାଗ - ବିଭାସ କେଦାର)

ଶୈଶବ କୈଶୋର ସଖୀ ଗହଣରେ ।
ହସି ଖେଳି ମୋଦେ ପଢ଼ି ଚାହାଳୀରେ ।୧।
ମଧ ଇଂରାଜୀରେ ଶିକ୍ଷା କଲ ଶେଷ ।
ଗୃହ କର୍ମ କଲ ତେଜି ଅଭିଳାଷ ।୨।
କାନ୍ତି ନିତି ସହ ମକରଙ୍କ ମେଳେ ।
ରଜ ପର୍ବ ପାଳୁଥିଲ ପିଲାଖେଳେ ।୩।

ଖୁଦୁରିକୁଣୀଙ୍କୁ ଭାଦ୍ରବ ମାସରେ ।
ସଖୀମେଳେ ପୂଜୁଥିଲ ଭକତିରେ ।୪।
ପର୍ବ ପର୍ବାଣୀରେ ବିବିଧ ସୁମନ ।
ସଖୀ ମେଳେ ତୋଳି ଗାଉଥିଲ ଗାନ ।୫।
ପିଲାବେଳ ସ୍ମୃତି କହି ମୋର ଆଗେ ।
ତୋଷୁଥିଲ ଚିତ୍ତ ପ୍ରୀତି ଅନୁରାଗେ ।୬।
ପିତା ମାତାଙ୍କର ସେବି ଶ୍ରୀଚରଣ ।
ପ୍ରଫୁଲ୍ଲ ମାନସେ କଟାଇଲ ଦିନ ।୭।
ସତର ବୟସେ କମନୀୟ ଠାଣି ।
ପ୍ରକାଶି ମୋ ହୃଦେ ବାସକଲ ଧନୀ ।୮।
ବସନ୍ତ କାଳର ମଧୁ ଲଗନରେ ।
ମୋ କର ବରିଲ ବିଧି ଆଶିଷରେ ।୯।
ବ୍ରାହ୍ମଣୀଙ୍କ ପରେ ଶ୍ରୀ ବାଲୁଙ୍କେଶ୍ୱର ।
ବନ୍ଦି ରଘୁନାଥ ସରୋଜ ପୟର ।୧୦।
ପଥେ ଡାଳଖାଇ ଚମ୍ପାନାଥ ଶମ୍ଭୁ ।
ପାଦରେ ପ୍ରଣମି ସ୍ମରି ବେନି ପ୍ରଭୁ ।୧୧।
ଆମ ଗ୍ରାମ ଇଷ୍ଟ ଶ୍ରୀତାମେରୀଶ୍ୱରୀ ।
ପୟରେ ପ୍ରଣତି କଲେ ଢ଼ାଳି ବାରି ।୧୨।
ଯଥୋକ୍ତ ବିଧିରେ ଗୃହେ ପରବେଶ ।
ଗୋପାଳଙ୍କୁ ନମି ହୋଇଲେ ହରଷ ।୧୩।
ବାସର ରାତ୍ରିର ପ୍ରୀତି ମଧୁଖେଳ ।
ଜଗାଏ ମାନସେ ପୀରତି କଲ୍ଲୋଳ ।୧୪।
ସେ କଲ୍ଲୋଳେ ତୁମେ ମୋ ହୃଦୟ ରାଣୀ ।
ରାଜା ଚିତ୍ତ ବୋଧ ବାଇ ପ୍ରୀତି ବାଣୀ ।୧୫।

ପର ପ୍ରତ୍ୟୁଷରୁ ଶିବ ଶ୍ରୀପୟର ।
ପୂଜା କରି ସୁଖେ ଫେରି ନିଜ ଘର ।୧୬।
ଗୁରୁଜନଙ୍କର ଲଭି ଶୁଭାଶିଷ ।
ଜାଆ ମେଳେ ରହି ହୋଇଲ ହରଷ ।୧୭।
ପ୍ରୀତି ଦାନେ ବଶ କରି ମୋ ଅନ୍ତର ।
ତୋଷୁଥିଲ ହୃଦ ନ କରି ଅନ୍ତର ।୧୮।
ମଧୁର ଅଧରେ ଚୁମ୍ବି ବାର ବାର ।
ପ୍ରେମେ କହିଥିଲ ''ତୁମେ ମୋ ସିନ୍ଦୁର'' ।୧୯।
ସୁଖ ଦୁଃଖ ଖେଳେ ମୋ ପ୍ରାଣ ସଙ୍ଗିନୀ ।
ଧୈର୍ଯ୍ୟ ଦେଉଥିଲ ମୋର ମନ ଜାଣି ।୨୦।
ବିଭୁ ନାମ ସଦା କରାଇ ସ୍ମରଣ ।
ଉଲ୍ଲସିତ କରୁଥିଲ ମୋ ପରାଣ ।୨୧।
ସରଳ ଜୀବନେ ସୁକୋମଳ ବାଣୀ ।
ଫୁଟାଇ ବାନ୍ଧବ ବନ୍ଧୁ ମନ କିଣି ।୨୨।
ଗୃହେ ଶାନ୍ତି ମୈତ୍ରୀ ରଖି ନିରନ୍ତର ।
ସେବାରେ କିଣିଲ ସବୁରି ଅନ୍ତର ।୨୩।
ସେବା ଭକତିରେ ତୋଷି ଗୁରୁଜନ ।
ଦୁଃଖୀ ପ୍ରତି ଦେଉଥିଲ ସନମାନ ।୨୪।
ସ୍ୱର୍ଗବାସୀ ଶାଶୁ ସେବତୀ ଶ୍ରୀମୁଖ ।
ଛବିରେ ନିରେଖି ଲଭିଥିଲ ଦୁଃଖ ।୨୫।
ଦେଢ଼ଶୁର ଜାଆ ନଣନ୍ଦ ଆଶିଷ ।
ଲଭି ପାଉଥିଲ ହୃଦୟେ ସନ୍ତୋଷ ।୨୬।
ଶ୍ୱଶୁର ଲକ୍ଷ୍ମଣ ତୁମରି ସେବାରେ ।
ସନ୍ତୋଷରେ ଥିଲେ ଆମରି ସଙ୍ଗରେ ।୨୭।

ଗ୍ରାମ ମୋହ ଏଡ଼ି ନ ପାରି ବିଦାୟ ।
ମାଗି ଦେଇଥିଲେ ପୁଣ୍ୟ ବରାଭୟ ।୨୮।
ଦେବୀ ଦେବତାଙ୍କ ଚ଼ରଣେ ଭକତି ।
ରଖି କିଣୁଥିଲ ମୋ ମାନସ ନିତି ।୨୯।



## ତୃତୀୟ ତରଙ୍ଗ
## ( ରାଗ - ଆଶାବରୀ)

ଶାନ୍ତ ସରଳ ଜୀବନେ ନିରଳସ କର୍ମ ।
କରି ଆତ୍ମ ସୁଖେ ଥିଲ ମନୁଁ ତେଜି ଭ୍ରମ ।୧।
ସୁଖାଦ୍ୟ ଅନ୍ନ ବ୍ୟଞ୍ଜନେ ତୋଷି ବନ୍ଧୁଜନ ।
ସୁଗୃହିଣୀ କର୍ମ କରି ଅରଜିଛ ପୁଣ୍ୟ ।୨।
ମଧୁରେ ମଧୁର କଲ ଜୀବନ ସରଣୀ ।
ସାଧନାରେ ଶକ୍ତି ଦେଲ ପ୍ରାଣ ପ୍ରଣୟିନୀ ।୩।
ସୁଖ ଦୁଃଖ ସମ ମଣି ସଂସାର ବୋଇତ ।
ଚ଼ଳାଇ ପୁତ୍ର କନ୍ୟାଙ୍କୁ କରିଲ ଶିକ୍ଷିତ ।୪।
ତୁମ ଯୋଗୁଁ ଏ ଲେଖନୀ ହୋଇଛି ସରସ ।
ଲଭିଛି ବିଶ୍ୱ ଜୀବନ ପଦ ଶୁଭାଶିଷ ।୫।
ପାଠକ ହୃଦୟେ ଦେଇ ଆନନ୍ଦ ପୀୟୂଷ ।
ବୁଧଜନମାନଙ୍କର ଲଭିଛି ଆଶିଷ ।୬।
ପ୍ରତିଦାନେ ମୋହ ଠାରୁ ପାଇ ନାହଁ ସୁଖ ।
ସାନନ୍ଦେ ବିତରି ପ୍ରୀତି ହରିଛ ମୋ ଦୁଃଖ ।୭।
ଶାନ୍ତ ମୁଖେ ସ୍ମିତ ହାସ ଫୁଟାଇ ଅଧରେ ।
ଭାବ ଘେନି ଭାବ ଦେଲ ସତତ ମଧୁରେ ।୮।



# ଚତୁର୍ଥ ତରଙ୍ଗ

## ( ରାଗ - ବଙ୍ଗଳାଶ୍ରୀ )

କନ୍ୟାର ବିବାହ ପାଇଁ ବରପାତ୍ର
ସନ୍ଧାନରେ ଥିବାବେଳେ ।
ଚଳାପଥେ ପଡ଼ି ପେଟରେ ଯନ୍ତ୍ରଣା
ଲଭିଲ ଅଦୃଷ୍ଟ ଖେଳେ ।୧।
ଅଞ୍ଜଳି ବିବାହ ଦିନ ସେହି ବ୍ୟଥା
ଜାଗି କରିଲା ଅସ୍ଥିର ।
କନ୍ୟା ସମ୍ପ୍ରଦାନ କଲେ ମାମୁଁ-ମାଇଁ
ନେତ୍ରୁଁ ବୁହାଇଲ ନୀର ।୨।
ପୁତ୍ର ବିଭା ପରେ ପୁତ୍ର-ବଧୂ ମେଳେ
ଲୋଡ଼ିଥିଲ ସୁଖ ଶାନ୍ତି ।
ବିଧାତାର ଚକ୍ରେ ମଉଳିଲା ଆଶା
ଚିତ୍ତେ ଲଭିଲ ଅଶାନ୍ତି ।୩।
ଅବସର ପରେ ରହି ଭଡ଼ା ଘରେ
ଭୁଲି ଅତୀତର କ୍ଳେଶ ।
ଜୀବନ ନଉକା ଚଳାଇଲ ସଙ୍ଗେ
ଲଭିଲ ଶାନ୍ତି ସନ୍ତୋଷ ।୪।
ଚାରି ମାସ ପରେ କିଣି ବାସଗୃହ
ରହିଲେ ଛେଣ୍ଡ ନଗରେ ।
ପୁତ୍ର ପୁତ୍ରବଧୂ ନାତି ସଙ୍ଗତରେ
ରହିଲ ଦୁଃଖ ସୁଖରେ ।୫।

ସୁରେନ୍ଦ୍ର ଲଳିତା ଉଦିତ ନଗରୁ
ଆସୁଥାନ୍ତି ବରାବର ।
ତୁମ କଥା ବୁଝି ଚାଲି-ଯାଉଥାନ୍ତି
ସପ୍ତାହରେ ଏକ ବାର ।୬।
ପର୍ବ ପର୍ବାଣୀରେ ସଭିଙ୍କୁ ଡ଼କାଇ
ପରଷି ପ୍ରଭୁ ପ୍ରସାଦ ।
ଦିଆଇ ଆନନ୍ଦ ହେଉଥିଲ ସୁଖୀ
ଚିତେ ଲଭି ମହାମୋଦ ।୭।
କାହା ଦୋଷଗୁଣ ମନରେ ନ ଧରି
ସଭିଙ୍କୁ ଦେଇ ଆଶିଷ ।
ଜନନୀ କର୍ତ୍ତବ୍ୟ କରୁଥିଲ ତୁମେ
ସହି ସବୁ ଅସନ୍ତୋଷ ।୮।



## ପଞ୍ଚମ ତରଙ୍ଗ

### ( ରାଗ - ବଙ୍ଗଳାଶ୍ରୀ )

ବିଶ୍ୱର ଜୀବନ ଛୁଇଁ ପ୍ରାଣ ମନ
ରହିଛ ବାହ୍ୟ ଅନ୍ତରେ ।
ଜନ୍ମ-ମୃତ୍ୟୁ ପରେ ପୁନର୍ଜନ୍ମ ଲୀଳା
ସରଜୁଛ ତ୍ରିଗୁଣରେ ।୧।
ସବୁରୁ ବିମୁକ୍ତ ବ୍ରହ୍ମଜ୍ଞାନେ ସ୍ଥିତ
ରହିଛ ପରମବ୍ରହ୍ମ ।
ଅନନ୍ତ ଅଚ୍ୟୁତ ଯୋଗଜ୍ଞାନ ତତ୍ତ୍ୱ
ବିସ୍ତାରି ହରୁଛ ଭ୍ରମ ।୨।

ତୁମ୍ଭରି କରୁଣା ନ ହୁଅଇ ଊଣା
କାହାଠାରୁ କେତେବେଳେ ।
କର୍ମବଶେ ପ୍ରାଣୀ କର୍ମଫଳ ଘେନି
ଆଶ୍ରା ନିଏ ପାଦ ତଳେ ।୩।
ଏ ଦୀନ ଅଧମ ଲଭି ନର ଜନ୍ମ
ଭୋଗଇ କରମ ଫଳ ।
ଲଭି କବି ପଦ ବିରଚଇ ପଦ
ଭଜି ତୋ ପାଦ କମଳ ।୪।
ଜୀବନ ଚକ୍ରରେ ତୃତୀୟ ପାଦରେ
ଜାୟାର ରୋଗ ଯନ୍ତ୍ରଣା ।
ବଢ଼ି ଗୁରୁତର ଦହଇ ଶରୀର
ତା'ରେ ବିତର କରୁଣା ।୫।
ଦାରୁବ୍ରହ୍ମ ମୂର୍ତ୍ତି ପ୍ରଭୁ ବିଶ୍ୱପତି
ଶ୍ରୀପଦେ କରେ ପ୍ରାର୍ଥନା ।
ପତ୍ନୀ ସହ ତବ ଦରଶନ ଆଶା
ପୂରଣେ ଉଡ଼ାଅ ବାନା ।୬।
ପତିତପାବନ ପତିତ ତାରିଣ
ରଖିଛ ପତିତ ମାନ ।
ଦିଅ ପାଦୋଦକ ହର ଶାନ୍ତି ଶୋକ
ପ୍ରଭୁ କମଳନୟନ ।୭।

ରଚନାକାଳ ତା ୧/୧/୨୦୦୭

   

## ଷଷ୍ଠ ତରଙ୍ଗ

## ( ରାଗ - ବଙ୍ଗଳାଶ୍ରୀ)

ଭଲ ମନ୍ଦ ଖେଳେ ଆଶା ନିରାଶାର
ଭାବ ହୁଅଇ ସଞ୍ଚାର ।
ପ୍ରଭୁ ଦାନ ଭାବି ବେନିକୁ ସମାନ
ମଣିଲେ ମିଳଇ ସାର ।୧।

ଗର୍ବ ଦମ୍ଭ ମାନ ଛାଡ଼ି ଦୃଢ଼େ ମନ
ଚିନ୍ତ ପରମ ଚ଼ରଣ ।
ପ୍ରଭୁ ଦୟାମୟ ଦେବେ ବରାଭୟ
ଶ୍ରୀଚ଼ରଣେ ଦେଇ ସ୍ଥାନ ।୨।

ସବୁରି ଭିତରେ ବ୍ୟାପି ଦୟାମୟ
ଦୟା କରିଛନ୍ତି ଦାନ ।
ଦୟାରେ ଜଗତ ହୁଏ ଆତଜାତ
ଦୟାକୁ କର ଭୂଷଣ ।୩।

ଦୟାର ପ୍ରଭାବେ ସମଭାବ ଜାଗେ
ସମତାରେ ପରଂବ୍ରହ୍ମ ।
ସାଧକ ହୃଦୟେ ଦିଅନ୍ତି ଦର୍ଶନ
ଦୂର କରି ମାୟା ଭ୍ରମ ।୪।

ନିଷ୍କାମ କରମେ ଜଗତ କଲ୍ୟାଣେ
ଆଚ଼ରିଲେ ଶୁଭକର୍ମ ।
ଅକ୍ଷୟ ଆନନ୍ଦେ ମିଳେ ପ୍ରେମାନନ୍ଦ
ମିଳଇ ପରମ ଧର୍ମ୍ମ ।୫।

ସେ ଧର୍ମ୍ମ ବିତରି          ଜଗତ ଉଦ୍ଧାରି
ଦାସ ଭାବେ ନେଲେ ଦିନ ।
ଘୋଷି ପ୍ରଭୁ ଯଶ          ପାପ ହୁଏ ନାଶ
ମିଳଇ ଇଷ୍ଟ କଲ୍ୟାଣ ।୬।
ଏ ଭାବରେ ମଜି          ଜଗନ୍ନାଥ ଭଜି
ପ୍ରିୟେ ଛାଡ଼ ମୋହ ମାୟା ।
ପ୍ରେମମୟ ହରି          ଶୁଣିବେ ଗୁହାରି
କରିବେ ତୁମକୁ ଦୟା ।୭।
ରଚ଼ନା କାଳ ତା ୧୦-୦୧-୨୦୦୭



## ସପ୍ତମ ତରଙ୍ଗ
## ( ରାଗ - ଚୋଖି )

ଉତ୍କଳ ଗୀତି ସମାଜ          ପରିବାର ହୋଇ ସଜ
ଶ୍ରୀକ୍ଷେତ୍ର ଦର୍ଶନ ଆଶା ରଖି ମନରେ ।
ଯୋଜନାକୁ କାର୍ଯ୍ୟକାରୀ          କରିବା ଚ଼ିତ୍ତରେ ସ୍ମରି
କବି ବନ୍ଧୁମାନେ ବ୍ୟସ୍ତ ଥିବା କାଳରେ ।
ଶାନ୍ତିର କର୍କଟ ବେମାର;
ଦର୍ଶନ ଆଶାକୁ କରିଦେଲା ଅସାର ।୧।
ସଦୟେ କରୁଣାମୟ          ହୃଦୟେ ଦେଇ ଅଭୟ
ବାସନା ପୂରଣ ପାଇଁ ଗୃହେ ଆସର ।

କବି ତାରିଣୀ ଚ଼ରଣ ଭୋଳେଶ୍ୱର ଭୀମସେନ
କବିଙ୍କୁ ବରି ମିଳନ କଲେ ଆସର ।
ଶାନ୍ତି ହୃଦେ ଦିବ୍ୟ ଆନନ୍ଦ;
ପ୍ରଦାନୀ ବାସନା ପୂର୍ଣ୍ଣ କଲେ ଗୋବିନ୍ଦ ।୨।
ବିଷ୍ଣୁପ୍ରିୟା ଭକ୍ତିଲତା ଗୌରୀ ସନ୍ଧ୍ୟାରାଣୀ ସ୍ରୋତା
ଛବିରାଣୀ କବି ଗୀତେ ଲଭିଲେ ମୋଦ ।
ଶାନ୍ତି ସହ ପ୍ରୀତ୍ୟାଳାପ କରି ହରି ଗୁରୁ ତାପ
ସାନନ୍ଦେ ବିଦାୟ ନେଲେ ତେଜି ବିଷାଦ ।
ଆସରର ଭକତି ରସ ;
ପାନ କରି ଶ୍ରୀଅଦ୍ୱୈତ ହେଲେ ସନ୍ତୋଷ ।୩।



## ଅଷ୍ଟମ ତରଙ୍ଗ

## ( ରାଗ - ବଙ୍ଗଳାଶ୍ରୀ )

ଶଯ୍ୟାଶାୟୀ ହୋଇ ଶୋଇଅଛି ଶାନ୍ତି
କର୍କଟ ରୋଗ ପ୍ରଭାବେ ।
ନାଡ଼ିର ପ୍ରକ୍ରିୟା ଚ଼ାଲିଛି ସଧୀରେ
ଶକତି ଜାଗଇ ଲବେ ।୧।
ବାନ୍ତି ନିରୋଧକ ଔଷଧ ସେବନେ
ଧୀରେ ହୁଏ ନିୟନ୍ତଣ ।
ଖାଦ୍ୟ ନଳୀ ଫୁଲା ଧୀରେ ଧୀରେ କମି
ଖାଦ୍ୟ କରଇ ଗ୍ରହଣ ।୨।
ନିରାଶାରେ ଆଶା ହୁଅଇ ସଞ୍ଚାର
ପ୍ରଭୁପାଦେ ରଖି ଧ୍ୟାନ ।

ଇଚ୍ଛାମୟ ଇଚ୍ଛା କରନ୍ତୁ ପୂରଣ
ଧୈର୍ଯ୍ୟ ଶକ୍ତି କରି ଦାନ ।୩।

ଦୀନ ଅଧମର ତ୍ରାଣକର୍ତ୍ତା ହରି
ତା'ଙ୍କ ବିନୁଁ ନାହିଁ କେହି ।

ସବୁରି ହୃଦୟେ ରହିଛନ୍ତି ବିଭୁ
ମନ ଜାଣି ଭାବଗ୍ରାହୀ ।୪।

ଶ୍ରୀକ୍ଷେତ୍ର ବାସନା କରାଇ ପୂରଣ
ସଦୟେ ଦେଇ ଦର୍ଶନ ।

କୃତ କର୍ମଫଳ ପ୍ରଦାନୀ ଗୋପାଳ
ପାପ କର ବିମୋଚନ ।୫।

ଜନ୍ମ ଜନ୍ମାନ୍ତରେ ତୁମ୍ଭରି ସେବାରେ
ଚିତ୍ତ ରଖି ଜଗନ୍ନାଥ ।

ଜଗତ ମଙ୍ଗଳେ ନିଜର ମଙ୍ଗଳ
ଭାବ ଦିଅ ଗୋପୀନାଥ ।୬।

ଜୟ ଜୟ ହରି ଗୋବିନ୍ଦ ମୁରାରି
ରାଧାକାନ୍ତ ବାସୁଦେବ ।

ଜୟ ନାରାୟଣ ଜୟ ଜଗନ୍ନାଥ
ଘେନ ଅଧମର ଭାବ ।୭।



# ନବମ ତରଙ୍ଗ

## ( ରାଗ - ବଙ୍ଗଳାଶ୍ରୀ )

ଚିରକାଳୁଁ ପ୍ରଭୁ ଜନ୍ମ ମୃତ୍ୟୁ ଖେଳ
ସରଜିଛ ଧରାପରେ ।
ପ୍ରାରବ୍ଧ କରମ ଇହ ଜନ୍ମ କର୍ମ
ଜୀବ ଭୋଗେ ନିରନ୍ତରେ ।୧।
ତୁମ୍ଭ କୃପା ହେଲେ ନିଷ୍କାମ ଭକ୍ତିରେ
ଜୀବ ଲଭି ତୋ ଚରଣ ।
ଭବ ବନ୍ଧନରୁ ମୁକ୍ତ ହୋଇ ଲଭେ
ତବ ପାଦ ପଦ୍ମେ ସ୍ଥାନ ।୨।
ଅକ୍ଷୟ ଆନନ୍ଦେ ବୁଡ଼ି ଅହରହ
ପିଏ ବ୍ରହ୍ମାନନ୍ଦ ରସ ।
ଜଗତ କଲ୍ୟାଣ କରେ ନିର୍ଦ୍ଦେଶରେ
ତୁମ୍ଭ ସଙ୍ଗେ ହୃଷିକେଶ ।୩।
କର୍ମ ଅନୁସାରେ ତୁମ୍ଭରି ଇଚ୍ଛାରେ
କର୍କଟ ରୋଗ ଯନ୍ତ୍ରଣା ।
ପାଉଛନ୍ତି ଶାନ୍ତି ନ ପାଉଛି ମୁକ୍ତି
କର ଟିକିଏ କରୁଣା ।୪।
ଖାଦ୍ୟ ଅବା ଜଳ କିଛି ରହୁନାହିଁ
ବାନ୍ତିରେ ଯାଏ ବାହାରି ।
ରକ୍ତଚାପ ସଙ୍ଗେ ହୃଦୟ ସ୍ପନ୍ଦନ
ଧୀରେ ଯାଉଅଛି ସରି ।୫।

ସଖା ସହୋଦର    ଆତ୍ମୀୟ ସ୍ୱଜନ
ପ୍ରିୟ କବି ବନ୍ଧୁଗଣ ।
ଦରସନେ ଆସି    ମଧୁବାକ୍ୟେ ତୋଷି
ଯାଉଛନ୍ତି ପ୍ରତିଦିନ ।୬।
ଆର୍ଥିକ ଚ଼ିନ୍ତନ    ଧୈର୍ଯ୍ୟ କରେ କ୍ଷୀଣ
ନ ଦିଶଇ ବୁଦ୍ଧିବାଟ ।
ସମ୍ପଦେ ବିପଦେ    ତୁମ୍ଭେ ଅଟେ ସାହା
ରକ୍ଷା କର କଳ୍ପବଟ ।୭।
ରଖ ବା ନ ରଖ    ଯାହା ତବ ଇଚ୍ଛା
ପୂର୍ଣ୍ଣ କର ଇଚ୍ଛାମୟ ।
ଘୋର ଚ଼ିନ୍ତାର୍ଣ୍ଣବେ    ହର ଚ଼ିତ୍ତ ଭୟ
କରେ ତୁମ୍ଭ ପାଦେ ଲୟ ।୮।
ରଚ଼ନାକାଳ - ତା ୧୧-୦୨-୨୦୦୭



## ଦଶମ ତରଙ୍ଗ
## ( ରାଗ - ବଙ୍ଗଳାଶ୍ରୀ)

କମି କମି ଯାଏ    ଜୀବନ ଆୟୁଷ
ବଢ଼ି ବଢ଼ି ଯାଏ ପୀଡ଼ା ।
ଅନ୍ତର୍ଯ୍ୟାମୀ ନାଥ    ରହିଛ ଅନ୍ତରେ
ହରିନିଅ ପ୍ରିୟା ପୀଡ଼ା ।୧।

ଶୋଇ ପାରୁନାହିଁ ହେଉଛି ଅଥୟ
ଦିଅ ସୁଖ ନିଦ୍ରା ତା'ରେ ।
ପ୍ରଫୁଲ୍ଲିତ କର ପ୍ରିୟାର ମାନସ
ଦେଖାଦେଇ ତା ଅନ୍ତରେ ।୨।
ଯେ ଦିନୁଁ ଦେଇଛ ଜାୟାର ପରଶ
ମୋର ଜୀବନ ପଥରେ ।
ସବୁ ସୁଖ ଦୁଃଖ ହୋଇଛି ମଧୁର
ସେ ଦିନୁଁ ତୁମ୍ଭ କୃପାରେ ।୩।
ସୁଖ ଦୁଃଖ ବୋଝ ବହି ମଥା ପରେ
ସାଧନାରେ ଦେଇ ବଳ ।
ନିଜେ ସହି କ୍ଲେଶ ହରିଛି ମୋ ଦୁଃଖ
ସ୍ମରି ତୋତେ ଆଦିମୂଳ ।୪।
ଯାହା ଦେଇଅଛ ସାଧନାର ଫଳ
ସବୁରେ ଶାନ୍ତି ପରଶ ।
ଦିଆଇ ଗୋବିନ୍ଦ ଦେଇଛ ଆନନ୍ଦ
ଲଭିଛି ପରମ ତୋଷ ।୫।
ରଚନାକାଳ - ତା ୧୨/୦୨/୨୦୦୭



## ଏକାଦଶ ତରଙ୍ଗ
## ( ରାଗ - ଆଶାବରୀ)

ଦୁଇ ହଜାର ପଞ୍ଚମେ ପଥର ଯନ୍ତ୍ରଣା
ଷଷ୍ଠର ପ୍ରଥମ ପାଦେ ହୋଇଥିଲା ଜଣା ।୧।
ପୀତ କୋଷରୁ ପଥର କରାଇ ବାହାର
କ୍ଷତ ଶୁଖିବା ଭିତରେ କର୍କଟ ବେମାର ।୨।

ପାକସ୍ଥଳୀ ସନ୍ନିକଟେ ହୋଇଲା ଉତ୍ପତ୍ତି
ବମ୍ବେ ଟାଟା ହସ୍ପିଟାଲ ଜଣାଇଲେ ସ୍ଥିତି ।୩।
ଉପଚାର ପାଇଁ କେମୋ ନେଲା ଛଅ ଥର
ବେମାର ନ କମି କ୍ରମେ ବଢ଼େ ଗୁରୁତର ।୪।
ଯୋଗମାର୍ଗ ଉପଚାର ଦେବତା ପୂଜନ
ହୋମପାଥି କବିରାଜି ଔଷଧ ସେବନ ।୫।
ନ ମାନି ରୋଗ ପ୍ରକୋପ ଦାହି ଅନ୍ତନାଳୀ
ରଗ୍‌ଣ କରିଲା ପ୍ରିୟାକୁ ହୋଇ ବଳଶାଳୀ ।୬।
ବାରମ୍ବାର ବହୁବାର ଚିକିତ୍ସାଳୟରେ
ଭର୍ତ୍ତିକରାଇ ଚିକିତ୍ସା କରିଲୁଁ ଧୈର୍ଯ୍ୟରେ ।୭।
ପତ୍ନୀର ଚିକିତ୍ସା ପାଇଁ ଆବଶ୍ୟକ ଅର୍ଥ
ଯୋଗାଡ଼ କରିବା ପାଇଁ ହୁଏ ଅସମର୍ଥ ।୮।
ରୋଗରୁ ଉଦ୍ଧାର ପାଇଁ ସର୍ବ ଉପଚାର
ବ୍ୟବହାର କରି ରୋଗୁଁ ନ ମିଳେ ଉଦ୍ଧାର ।୯।
ଇସ୍ପାତ ଚିକିତ୍ସାଳୟେ ଚିକିତ୍ସା କୋଠିରେ
ପ୍ରିୟା ମୋର ଶୋଇଅଛି ଚିକିତ୍ସା ଶଯ୍ୟାରେ ।୧୦।
ଖାଦ୍ୟଗ୍ରହଣେ ସମର୍ଥ ନ ହୋଇ ଶରୀର
ନୀର ଆହାରରେ ତନୁ କ୍ଷୀଣ ହୁଏ ତାର ।୧୧।
ଶାନ୍ତିମୟୀ ନେତ୍ରୁଁ ଦେଖି ଦୁଃଖ ଅଶ୍ରୁଧାର
ମୋ ନେତ୍ରରେ ଲୁହ ଜାଗେ ଲଘିଂ ଧୈର୍ଯ୍ୟଗାର ।୧୨।
ପରମ ମାତା ଭକତ ଶୈଳେନ୍ଦ୍ର କୁମାର
ଜନନୀ ସେବାରେ ସଦା ରହିଛି ତତ୍ପର ।୧୩।
ସୁଖ ଦୁଃଖ ସବୁ ଦେଇ ମାତାଙ୍କ ପୟରେ
ଜନନୀର ସେବା କରେ ନିଷ୍କାମ ଚିତ୍ତରେ ।୧୪।

ଶୈଳେନ୍ଦ୍ରର ଭାବ ଘେନ ପ୍ରଭୁ ଦୟାମୟ
ସେବାର ଅକ୍ଷୟ ଫଳ ସନ୍ତାନକୁ ଦିଅ ।୧୫।
ଦୟାମୟ ପରଂବ୍ରହ୍ମ ପ୍ରଭୁ ଜଗନ୍ନାଥ
ଚରଣେ ଶରଣ ମାଗେ ନକର ଅନାଥ ।୧୬।
ଜାଣେ ନାହିଁ ତବ ପୂଜା ସ୍ତବ ପାଠ ଗାନ
ମୂଢ଼ ଭାବରେ ଚିନ୍ତଇ ତୋତେ ନାରାୟଣ ।୧୭।
ଦୟାମୟ ସର୍ବେଶ୍ୱର ପ୍ରଭୁ ନାରାୟଣ
ହୃଦପଦ୍ମେ ତବ ପାଦ କରଇ ସ୍ମରଣ ।୧୮।
ଆରତ ଭଞ୍ଜନ ଟେକ ରଖ ନାରାୟଣ
ଜାୟା ମୁଖେ ହସ ଦିଅ କମଳଲୋଚନ ।୧୯।
ଯାହା ତବ ଇଚ୍ଛା ପ୍ରଭୁ କରାଅ ପୂରଣ
ଶାନ୍ତିର ଯାତନା ହରି ପାଦେ ଦିଅ ସ୍ଥାନ ।୨୦।

ତା ୧୩/୦୨/୨୦୦୭



## ଦ୍ୱାଦଶ ତରଙ୍ଗ

## ( ରାଗ - ବଙ୍ଗଳାଶ୍ରୀ)

ବେନି ପୁତ୍ରବଧୂ ସ୍ୱ ବୃତ୍ତି ଅନ୍ତରେ
କରନ୍ତି ସେବା ତୁମର ।
ଜାଣି ତାଙ୍କ ବ୍ୟଥା ବିତର ଆଶିଷ
ପ୍ରଭୁଙ୍କୁ କର ଜୁହାର ।୧।
ରବୀନ୍ଦ୍ର ସୁରେନ୍ଦ୍ର ଶକ୍ତି ଅନୁଯାୟୀ
ବୁଝନ୍ତି ତୁମର କଥା ।
ବୃତ୍ତିକୁ ବଞ୍ଚାଇ କରୁଛନ୍ତି ସେବା
ନ କହି ମନର ବ୍ୟଥା ।୨।

ଦିବା ନିଶି ସଦା ଶୈଳେନ୍ଦ୍ର ତୁମରି
ମନ ଜାଣି ସେବା କରେ ।
ପାଖେ ପାଖେ ରହି ଔଷଧ ଖୁଆଇ
ରୋଗର ଯନ୍ତଣା ହରେ ।୩।
ତୁମ ଦୁଃଖେ ଦୁଃଖୀ ହୋଇ ସନ୍ଧ୍ୟାରାଣୀ
ସେବଇ·ତୁମର ପାଦ ।
ମନ ଜାଣି ଖାଦ୍ୟ ଖୁଆଏ ତୁମକୁ
ଚିତ୍ତେ ସ୍ମରି ହରି ପାଦ ।୪।
ଦେଖି ତୁମ ଦୁଃଖ ନେତ୍ର ନୀରେ ଧୋଇ
ସଞ୍ଜାଳି ତୁମ ଶରୀର ।
କହି ମଧୁ ଗିର ପୀଡ଼ା କରି ଦୂର
ବୋଧଇ ତୁମ ଅନ୍ତର ।୫।
ଅଞ୍ଜଳି ଭକ୍ତିରେ ନମି ପାଦତଳେ
ସେବଇ ତୁମ ଚରଣ ।
ଗୌତମ ସେବାରେ ରଖିଥାନ୍ତି ଦୃଷ୍ଟି
ଅନ୍ତରେ କରି ପ୍ରଣାମ ।୬।
ନୀତି ପର୍ଶୁରାମ ଟୁନା ଓ ଟିକିନା
ଦିଅର ଯେ ପ୍ରଭାକର ।
ବହୁବାର ଆସି ତୁମ ପାଖେ ବସି
କଷ୍ଟ କରୁଥିଲେ ଦୂର ।୭।
ଭାଣେଜୀ ଜୁଆଇଁ ଅନିଳ କୁମାର
ସରସ୍ୱତୀ ତୁମ କଥା ।
ଦୂର ଶ୍ରବଣରେ ବୁଝି ବାର ବାର
ଚିତ୍ତେ ଲଭୁଥିଲେ ବ୍ୟଥା ।୮।

ଦରଶନେ ଆସି ତୁମ ପାଖେ ବସି
ସାନ୍ତ୍ୱନା ଦେଇ ମଧୁରେ ।
ତୋଷିଲେ ହୃଦୟ ହେବ ନିରାମୟ
ଚିନ୍ତା ନ କର ଚିତ୍ତରେ ।୯।
ଚିକିତ୍ସାଳୟରେ ବିମଳ କୁମାର
ବିଲୋକି ଦୁଃଖ ନେତ୍ରରେ ।
ନମି ଭକ୍ତିଭରେ ଆର୍ଥିକ ସାହାଯ୍ୟ
ଦେଇଥିଲା ବିନୟରେ ।୧୦।
ପୂଜନୀୟା ଜାଆ ଜାନକୀ ଭାଉଜ
ନିନିକୁ ସଙ୍ଗରେ ଘେନି ।
ଦୁଇ ଦିନ ଦୁଇ ରାତ୍ରି ତୁମ ସଙ୍ଗେ
ରହିଥିଲେ ମନ ଜାଣି ।୧୧।
ଶ୍ରୀମତୀ ସୁନନ୍ଦା ଲିଲି ଆଉ ପଦ୍ମା
ସ୍ୱପରିବାର ସହିତ ।
ବାର ବାର ଆସି ତୁମ ଦୁଃଖେ ଦୁଃଖି
ହୋଇ ବୋଧୁଥିଲେ ଚିତ୍ତ ।୧୨।
ପିଲାଙ୍କର ଶାଶୁ ଶ୍ୱଶୁର ବାନ୍ଧବ
ସେମାନଙ୍କ ପରିବାର ।
ଦେଖି ତୁମ ଦୁଃଖ ବିତରିଲେ ସୁଖ
କ୍ଷଣେ ଦୁଃଖ କରି ଦୂର ।୧୩।
ମଧୁର ଚିନ୍ତନ ମଧୁର ସ୍ୱପନ
ଧୀରେ ମନୁଁ ଅପସରି ।
ବଞ୍ଚିବାର ଆଶା ହୁଅଇ ନିରାଶା
ଉଠାଇ କାଳ ଲହରୀ ।୧୪।

ଶୟନେ ସ୍ୱପନେ ଜାଗରିତ ମନେ
କାଳ ଭବିଷ୍ୟ ସୂଚନା ।
ଭୟ କରି ଜାତ ବୋଧ କରେ ଚିତ୍ତ
କର ବିଭୁ ଉପାସନା ।୧୫।
ଶକ୍ତି ଅନୁସାରେ ତୁମ ସେବା କରେ
ପ୍ରଭୁ ପଦେ ରଖି ଲୟ ।
ମହାମାୟା କାଳୀ ଶ୍ରୀପୟରେ ନମି
ମାଗେ ଦେବାକୁ ଅଭୟ ।୧୬।



## ତ୍ରୟୋଦଶ ତରଙ୍ଗ
## (ସଙ୍ଗୀତ)

ଘେନ ପ୍ରଭୁ ଶାନ୍ତି ଆରତ ।
ରୋଗ ଯନ୍ତଣାରୁ; କର ମୁକତ (ଘୋଷା)
କର୍କଟ ବେମାର କଷଣ ଦହୁଅଛି ତା' ପଞ୍ଚପ୍ରାଣ
ହର ତା' କଷଣ ପ୍ରଭୁ ନାରାୟଣ ।
ସଂସାର ବନ୍ଧନୁ ଫେଡ଼ ଅଚ୍ୟୁତ ।୧।
ଅନେକ ଜନମର ଫଳ କ୍ରମେ ଦିଆଇ ଆଦିମୂଳ
ପ୍ରାରବ୍ଧ କରମ ଇହ ପର କର୍ମ ।
ଫଳ ଭୁଞ୍ଜି ପ୍ରାଣୀ ନ ହୁଏ ମୁକ୍ତ ।୨।
ଲଭିଲେ ତୁମରି କରୁଣା ମାୟାବଶେ ନ ହୋଇ ବଣା
ଘୋଷି ତବ ନାମ ଅରଜଇ ପୁଣ୍ୟ ।
ଜନ୍ମ ମୃତ୍ୟୁ ଖେଳୁଁ ହୁଏ ମୁକତ ।୩।

ଶାନ୍ତି ଘୋଷେ ତୁମ୍ଭରି ନାମ   ସଦୟେ ଦିଅ ଦରଶନ
ପ୍ରଭୁ ଜଗନ୍ନାଥ   ନ କର ଅନାଥ ।
ଦୁଃଖିନୀକୁ  କଷ୍ଟୁଁ  କର ମୁକତ ।୪।
ରଚନା କାଳ ତା ୯/୩/୨୦୦୭ ଶୁକ୍ରବାର



# ଚତୁର୍ଦ୍ଦଶ ତରଙ୍ଗ

## ( ରାଗ - ଆଶାବରୀ)

ଚୈତ୍ର ମାସ କୃଷ୍ଣପକ୍ଷ ସପ୍ତମୀ ରାତ୍ରିରେ ।
ଆକୁଳେ ବେଦନା ସିକ୍ତ କରୁଣ କଣ୍ଠରେ ।୧।
ବାରମ୍ବାର ବିଭୁ ନାମ କରି ସୁମରଣ ।
ଶାନ୍ତିମୟୀ ପ୍ରିୟା ମୋର ଜପି ନାରାୟଣ ।୨।
ପୁତ୍ର କନ୍ୟା ସନ୍ଧ୍ୟା ମୁଖୁଁ ଓଁକାର ଶବଦ ।
ଶୁଣି ମହାନିଦ୍ରା ନେଲ ଛାଡ଼ି ଅବସାଦ ।୩।
ମଧୁ କାଳରେ ଜନମି ମଧୁର ବନ୍ଧନେ ।
ମଧୁରେ କର୍ତ୍ତବ୍ୟ ସାରି ଯାଇଛ ମଉନେ ।୪।
କୃତ ଅପରାଧ ମୋର ନ ଧରି ମନରେ ।
ପରମାତ୍ମା ପଦେ ଚିତ୍ତ ରଖ ନିରନ୍ତରେ ।୫।
ଦୟାମୟ ତୁମ ଦୁଃଖ କରିବେ ଦହନ ।
ଅଖଣ୍ଡ ଶାନ୍ତି ପ୍ରଦାନୀ ତୋଷିବେ ପରାଣ ।୬।
ଶନିବାର ଦୁଇ ପାଦ ପୁଷ୍କରା ଲଗନେ ।
ଅଠାବନ ବର୍ଷେ ଗଲ ଅମର ଭୁବନେ ।୭।
ମନମୋହନ ଅନିତା ଅନ୍ତିମ ଦର୍ଶନେ ।
ପ୍ରଣତି କରି ସଦ୍‌ଗତି ଚିନ୍ତିଲେ ମଉନେ ।୮।

ରବିବାର ପ୍ରାତଃକାଳୁଁ ପୁର ନାରୀଗଣ ।
ସ୍ନାନାନ୍ତରେ ନୂଆ ଶାଢ଼ୀ ପିନ୍ଧାଇ ବହନ ।୯।
ଅଳତା ସିନ୍ଦୁର ଚୂଡ଼ି ପୁଷ୍ପେ ସୁଶୋଭିତ ।
କରି ଭାବରେ ଭଜିଲେ ବିଦାୟ ସଂଗୀତ ।୧୦।
ଶଙ୍ଖ ଧ୍ୱନି ହୁଳହୁଳି ରାମନାମ ସତ୍ୟ ।
ଶବଦରେ ହରିବୋଲ ହେଲା ପ୍ରକମ୍ପିତ ।୧୧।
ବଳିତା ଆଲୋକ ନାତି ନାତୁଣୀ ଦେଖାଇ ।
ବିଦାୟ ଦେଲେ ତୁମକୁ ଆଖି ନୀରେ ଧୋଇ ।୧୨।
ନୂଆ ବାଉଁଶେ ନିର୍ମିତ ଶବାଧାର କୋଣେ ।
ଚାରି ରମ୍ଭା ତରୁ ଦୃଢ଼େ ବାନ୍ଧିଣ ଯତନେ ।୧୩।
ତହିଁରେ ଶୁଆଇ ଢାଙ୍କି ଶୁକ୍ଳ ବସନ ।
ସୁବାସ କୁସୁମେ ଦେହ କରିଲେ ମଣ୍ଡନ ।୧୪।
ସୁବାସିତ ଧୂପ ପାଳ ଦଉଡ଼ିର ଅଗ୍ନି ।
ଶୁଖିଲା ତୁଳସୀ ବୃକ୍ଷ ସଂସ୍କାର ସାମଗ୍ରୀ ।୧୫।
ସ୍ୱର୍ଗଯାନେ ରଖି ସଙ୍ଗେ ମାଲ ଭାଇଗଣ ।
ରାମ ନାମ ସତ୍ୟ ଗାନ କଲେ ଉଚ୍ଚାରଣ ।୧୬।
ଅହ୍ୟ ଢେଙ୍କୁରା ବିହୁନେ କଂସା ଥାଳି ବାଦ୍ୟ ।
ବଜାଇ ବିଦାୟ ଦେଲି ମନୁ ଛାଡ଼ି ଖେଦ ।୧୭।
ଲାଲୁ ଝୁଲୁ ଶିଲୁ ସଙ୍ଗେ ଆତ୍ମୀୟ ସ୍ୱଜନ ।
ଶବାଧାର ସଙ୍ଗେ ମିଳି କରିଲେ ଗମନ ।୧୮।
ଆତ୍ମାର ସଦ୍‌ଗତି ଚିନ୍ତା ମନାସି ମନରେ ।
ଖଇ କଉଡ଼ି ଫିଙ୍ଗିଲେ ଯିବା ସରଣୀରେ ।୧୯।
ସାହିର ନାରୀ ପୁରୁଷ ହୋଇ ଏକତ୍ରିତ ।
ମହାଯାତ୍ରା ଦେଖୁଥିଲେ ଯୋଡି ବେନି ହସ୍ତ ।୨୦।

କାଷ୍ଠ ଚନ୍ଦନ ଜୁଇରେ ଢ଼ାଳି ଘୃତାହୁତି ।
ମୁଖାଗ୍ନି ଦେଇ ରବୀନ୍ଦ୍ର ଫେରିଲା ତଡ଼ତି ।୨୧।
ଦ୍ୱିତୀୟ ଦିବସେ ଯାଇ ଦେଖିଲି ଚିତାଗ୍ନି ।
କଳ୍ପନା ନୟନେ ଦେଖେ ଜଳୁଅଛି ଅଗ୍ନି ।୨୨।
ବେଦବ୍ୟାସ ଶ୍ମଶାନର ଚିତାଗ୍ନିରେ ଲିନ ।
ହେଲା ପଞ୍ଚଭୂତ ଦେହ ଭେଟି ନାରାୟଣ ।୨୩।
ନାମ ଯଜ୍ଞ ସଙ୍ଗୀତର ମଧୁର ଲହରେ ।
ତୁମ ପଞ୍ଚପ୍ରାଣ ମିଶି ଖେଳଇ ନଭରେ ।୨୪।
ବିଲୋକି ମଧୁର ଦୃଶ୍ୟ ବ୍ରାହ୍ମଣୀ ପୁଳିନେ ।
ଆତ୍ମାର ସଦ୍‌ଗତି ଚିନ୍ତା ଜାଗିଲା ମୋ ମନେ ।୨୫।
କୃଷ୍ଣ ଦ୍ୱୈପାୟନ ବ୍ୟାସ ପବିତ୍ର ଚରଣେ ।
ପ୍ରିୟାକୁ ସମର୍ପି ଦୁଃଖେ ଫେରିଲି ସଦନେ ।୨୬।
ଚତୁର୍ଥ ଦିନରୁ ଦଶ ଦିନ ପ୍ରତିଦିନ ।
କର୍ତ୍ତା ବ୍ରାହ୍ମଣ ଭଣ୍ଡାରୀ ମିଳି ତିନି ଜଣ ।୨୭।
ବ୍ରହ୍ମଣୀ ପୂରୁବ ତଟ ବାଲୁକା ଶଯ୍ୟାରେ ।
ଶାନ୍ତିର ସଂସ୍କାର କର୍ମ ପତ୍ର କୁଟିରରେ ।୨୮।
ଯଥା ବିଧିରେ କରମ ସାରି ଦଶମୀରେ ।
ଅବଶିଷ୍ଟ କର୍ମ ଶେଷ କଲେ ମୋ ଗୃହରେ ।୨୯।
ବନ୍ଧୁ ବାନ୍ଧବ ମେଲାଣି ନେଇ ଗଲେ ଦୂରେ ।
ପ୍ରିୟାର ସ୍ମୃତିକୁ ଆଙ୍କେ ଲେଖନୀ ମୁନରେ ।୩୦।
ଦୟାମୟ ଜଗନ୍ନାଥ ପରଂବ୍ରହ୍ମ ହରି ।
ଶାନ୍ତିକୁ ଚରଣେ ସ୍ଥାନ ଦିଅ କୃପା କରି ।୩୧।
ତବ କରୁଣାରେ ବିଶ୍ୱ ହୁଏ ମଧୁମୟ ।
''ଅହ୍ୟରାଣୀ'' ଖ୍ୟାତ ହେଉ ଲଭି ତୋ ଅଭୟ ।୩୨।

ଚ଼ତୁର୍ଦ୍ଦଶ ତରଙ୍ଗରେ ଅହଲ୍ୟରାଣୀ ଶେଷ ।

ଦୋଷ ନ ଘେନି ସାଧବେ ଘେନନ୍ତୁ ଏ ରସ ।୩୩।

ବିନାମୂଲ୍ୟେ ଏ ପୁସ୍ତକ କରେ ବିତରଣ ।

ପ୍ରତ୍ୟାଶା ମୁଁ କରେ ନାହିଁ ପ୍ରଭୁ ନାରାୟଣ ।୩୪।

ଗୋବିନ୍ଦ ପଦାରବିନ୍ଦ ମଧୁର ପରଶ ।

ଲଭି ବର୍ଣ୍ଣିତ ଚ଼ରିତ ପ୍ରଦାନୁ ହରଷ ।୩୪।

ରଚ଼ନାକାଳ - ୧୦/୦୬/୨୦୦୭

ସମାପ୍ତ



# ଗୋପବନ୍ଧୁ ପାଠାଗାର

# **Gopabandhu Pathagar**

*E S T D - 2003*

**Managed by Gopabandhu Welfare Trust**

**Gopabandhu Nagar , Chhend, Rourkela - 15**

*Regd. No. - 435/Dt. 4.10.2000*

ଗୋପବନ୍ଧୁ ପାଠାଗାର, ଛେଣ୍ଡ, ରାଉରକେଲାର ବରିଷ୍ଠ କର୍ମକର୍ତ୍ତା ଲୋକପିୟ ସାହିତ୍ୟିକ ତଥା ସୁ ସଂଗଠକ, ଗବେଷକ, କବି ଶ୍ରୀଯୁକ୍ତ ଗୋକୁଳ ଚ଼ନ୍ଦ୍ର ମିଶ୍ରଙ୍କ ଜୀବନର ସମସ୍ତ ପ୍ରେରଣାର ଉତ୍ସ ତାଙ୍କର ଧର୍ମପତ୍ନୀ, ବିଦୁଷୀ, ସୁ ଗୃହିଣୀ, ସଦାଚ଼ାରୀ, ମହିୟସୀ ମହିଳା ଶ୍ରୀମତୀ ଶାନ୍ତିମୟୀ ଦେବୀଙ୍କର ତା୧୦.୩.୨୦୦୭ ରିଖ (ଶନିବାର) ଦିନ ଅକାଳ ବିୟୋଗରେ ଗୋପବନ୍ଧୁ ପାଠାଗାରର କାର୍ଯ୍ୟକାରୀ ସଭାପତି, ଉପସଭାପତି, ପରାମର୍ଶଦାତା, ସାଧରାଣ ସମ୍ପାଦକ, କାର୍ଯ୍ୟକାରୀ କର୍ମକର୍ତ୍ତା ବୃନ୍ଦ ତଥା ପାଠାଗାରର ସମସ୍ତ ସଦସ୍ୟ ଗଭୀର ଭାବରେ ବ୍ୟଥିତ ଓ ମର୍ମାହତ ଅକାଳ ବିୟୋଗ ଜନିତ ବିଚ୍ଛେଦ ଯନ୍ତଣାରେ ଜର୍ଜରିତ ଓ ଶୋକ ସନ୍ତପ୍ତ ତାଙ୍କ ପରିବାରବର୍ଗଙ୍କ ପ୍ରତି ଆମେ ଗଭୀର ସମବେଦନା ଜ୍ଞାପନ କରିବା ସହିତ ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଅଛୁ ଯେ , ଦାରୁଣ ବିଚ୍ଛେଦ ଜନିତ ଦଃସହ ଦୁଃଖ ସହ୍ୟ କରିବାକୁ ପରମେଶ୍ୱର ଶ୍ରୀଯୁକ୍ତ ମିଶ୍ରଙ୍କ ସନ୍ତାନ ସନ୍ତତି ତଥା ପରିବାରବର୍ଗ ଓ ଆତ୍ମୀୟ ସ୍ୱଜନଙ୍କୁ ଅମାପ ଶକ୍ତି ପ୍ରଦାନ କରନ୍ତୁ ।

ଆମେ ବିଦାୟୀ ଆତ୍ମାର ଅମରଗତି କାମନା କରୁଅଛୁ ।

ସ୍ୱା/-
ଶ୍ରୀ ହୃଷିକେଶ ମହାନ୍ତି
କାର୍ଯ୍ୟକାରୀ ସଭାପତି

ସ୍ୱା/-
ଶ୍ରୀ ହରିହର ଶତପଥୀ
ସାଧାରଣ ସମ୍ପାଦକ



ପରିବାର ଗହଣରେ ଶାନ୍ତିମୟୀ



ସ୍ୱାମୀଙ୍କ ସହିତ ଶାନ୍ତିମୟୀ